

ବୈଜ୍ଞାନିକ

# ସି. ଭି. ରମଣ

ଶ୍ରୀ ଶିବନାରାୟଣ ମିଶ୍ର

ଜନଶକ୍ତି ପୁସ୍ତକାଳୟ

ବନୋଦବହାରୀ, କଟକ-୨

ଭାରତର କୃତୀ ସନ୍ତାନମାନଙ୍କ ମଧ୍ୟରେ ଚନ୍ଦ୍ରଶେଖର ଭେଙ୍କଟ ରମଣଙ୍କ ନାମ ଚିରସ୍ମରଣୀୟ । କେତେକ ନୂତନ ବୈଜ୍ଞାନିକ ତଥ୍ୟ ଉଦ୍ଭାବନକରି ସେ ଆଜି ପୃଥିବୀ ବିଖ୍ୟାତ ହୋଇପାରିଛନ୍ତି । ତାଙ୍କର ତଥ୍ୟ ବିଜ୍ଞାନ-ଜଗତରେ ଅନେକ ପରିବର୍ତ୍ତନ ଆଣିପାରିଛି । ଭାରତର ବୈଜ୍ଞାନିକମାନଙ୍କ ମଧ୍ୟରେ ସେ ପ୍ରଥମେ ନୋବେଲ୍ ପୁରସ୍କାର ଲାଭ କରି ନିଜର ତଥା ସ୍ୱୀୟ ଦେଶର ଗୌରବ ବୃଦ୍ଧି କରିଛନ୍ତି । ଜଣେ ପ୍ରଖ୍ୟାତ ବୈଜ୍ଞାନିକଭାବରେ ସେ ଆଜି ସୁପରିଚିତ ।

୧୮୮୮ ମସିହାର ନଭେମ୍ବର ୭ ତାରିଖ ଦିନ ଦକ୍ଷିଣ-ଭାରତର ଇତିହାସ ପ୍ରସିଦ୍ଧ ତ୍ରିଚିନାପଲ୍ଲୀ ସହରରେ ଚନ୍ଦ୍ରଶେଖର ଭେଙ୍କଟ ରମଣଙ୍କର ଜନ୍ମ । ଚନ୍ଦ୍ରଶେଖର ତାଙ୍କ ପିତା-ମାତାଙ୍କର ଦ୍ୱିତୀୟ ସନ୍ତାନ । ପିତାଙ୍କର ତାଙ୍କର ନାମ ଶ୍ରୀ ଚନ୍ଦ୍ରଶେଖର ଆୟାର । ଆୟାର ପାଶ୍ଚାତ୍ୟ ଶିକ୍ଷାରେ ଅତ୍ୟନ୍ତ ଆଗ୍ରହୀ ଥିଲେ । ରମଣ ଜନ୍ମ ହେବା ସମୟରେ ସେ ସ୍ଥାନୀୟ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକ ଥାଇ ବି. ଏ. ପରୀକ୍ଷା ନିମିତ୍ତ ଅଧ୍ୟୟନ କରୁଥିଲେ । ରମଣଙ୍କର ମାତା ପ୍ରଭାତୀ ଦେବୀ ଜଣେ ପ୍ରସିଦ୍ଧ ପଣ୍ଡିତଙ୍କର କନ୍ୟା । ସେ ବହୁଗୁଣସମ୍ପନ୍ନା ଥିଲେ । ସହିଷ୍ଣୁତା ଓ ମିତବ୍ୟୟିତା ତାଙ୍କର ପ୍ରଧାନ ଗୁଣ ଥିଲା ।

ରମଣଙ୍କର ଜନ୍ମପରେ ତାଙ୍କର ପିତା ପଦାର୍ଥ ବିଜ୍ଞାନରେ ବି· ଏ· ପାସ୍ କରିଥିଲେ । ଏହାପରେ ସେ ଏକ ସ୍ଥାନୀୟ କଲେଜରେ ଅଧ୍ୟାପକ ଭାବରେ କାର୍ଯ୍ୟ କରିବାକୁ ଆରମ୍ଭ କରନ୍ତି । ଏହି ସମୟରେ ସେ ଦକ୍ଷିଣ ଭାରତୀୟ ସଙ୍ଗୀତ ଶିକ୍ଷା କରନ୍ତି । ଚନ୍ଦ୍ରଶେଖର ଆୟାର ଏହି ଚାକିରିରେ ସନ୍ତୁଷ୍ଟ ନ ଥିଲେ । ଅଧ୍ୟାପକ ଭାବରେ ପାଉଥିବା ବେତନ ତାଙ୍କର ପରିବାରର ଭରଣ-ପୋଷଣ ନିମନ୍ତେ ଯଥେଷ୍ଟ ହେଉ ନ ଥିବାରୁ ସେ ଆନ୍ଧ୍ର ଦେଶକୁ ଯିବା ନିମନ୍ତେ ସ୍ଥିର କଲେ । ତାଙ୍କର ବନ୍ଧୁ ଶ୍ରୀନିବାସ ଆୟାଙ୍ଗାର ବିଶାଖାପାଟଣା ହିନ୍ଦୁ କଲେଜର ଅଧ୍ୟକ୍ଷ ଥିଲେ । ସେ ଆୟାରଙ୍କୁ ହିନ୍ଦୁ କଲେଜର ପଦାର୍ଥ-ବିଜ୍ଞାନ ଅଧ୍ୟାପକର ପଦ ଗ୍ରହଣ କରିବା ନିମନ୍ତେ ଅନୁରୋଧ କରିଥିଲେ । ଆୟାର ତାଙ୍କର ଅନୁରୋଧ ରକ୍ଷା କରି ନିଜର ପରିବାର ସହିତ ୧୮୯୨ ମସିହାରେ ବିଶାଖାପାଟଣା ସହରକୁ ଚାଲିଆସିଲେ । ଦୁଇ ବନ୍ଧୁ ସମୁଦ୍ରକୂଳ ନିକଟରେ ପ୍ରତିବେଶୀଭାବରେ ବାସ କରିବାକୁ ଆରମ୍ଭ କଲେ । ସେହି ସ୍ଥାନର ପ୍ରାକୃତିକ ଦୃଶ୍ୟ ମନୋମୁଗ୍‌ଧକର ଥିଲା । ରମଣଙ୍କର ବାଲ୍ୟକାଳ ଏହିଠାରେ ପ୍ରକୃତିର କୋଳରେ ଅତିବାହିତ ହୋଇଥିଲା ।

ଶ୍ରୀନିବାସ ଆୟାଙ୍ଗାର କଲେଜରେ ଇଂରାଜୀ ସାହିତ୍ୟ ଅଧ୍ୟାପନା କରୁଥିଲେ । ଚନ୍ଦ୍ରଶେଖର ଆୟାର ପଦାର୍ଥ-ବିଜ୍ଞାନ ଏବଂ ଗଣିତ ଅଧ୍ୟାପକ ଥିଲେ । ଏହି ଉଭୟ ବିଷୟରେ ତାଙ୍କର ଦକ୍ଷତା ଥିଲା । ସେ ଜ୍ୟୋତିର୍ବିଜ୍ଞାନ ଏବଂ ସଙ୍ଗୀତପ୍ରିୟ ଥିଲେ । ଦୁଇ ବନ୍ଧୁ ଅନେକ ସମୟ ବିଦ୍ୟାଚର୍ଚ୍ଚାରେ କଟାଉଥିଲେ ।

ରମଣଙ୍କ ଉପରେ ତାଙ୍କ ପିତା-ମାତାଙ୍କର ପ୍ରଭାବ ପଡ଼ିଥିଲା । ପରବର୍ତ୍ତୀ ଜୀବନରେ ସେ ପିତାଙ୍କ ପରି ମେଧାବୀ ହୋଇପାରିଥିଲେ । ଗଣିତ, ପଦାର୍ଥ-ବିଜ୍ଞାନ ଓ ସଙ୍ଗୀତରେ ରମଣ ପ୍ରବୀଣ ଥିଲେ । ମା'ଙ୍କ ପରି ସେ କଷ୍ଟସହିଷ୍ଣୁ ଓ କାର୍ଯ୍ୟଦକ୍ଷ ଥିଲେ ।

ରମଣ ଖୁବ ଶୃଙ୍ଖଳିତ ଥିଲେ । ତାଙ୍କ ବୟସ ଅନୁପାତରେ ସେ ଅଧିକ ଜ୍ଞାନର ଅଧିକାରୀ ଥିଲେ । ଓ୍ୱାଲ୍‌ଟିଅର୍‌ର ଗୋଟିଏ ଗୃହଶାଳୀରେ ରମଣଙ୍କର ବିଦ୍ୟାରମ୍ଭ ହୋଇଥିଲା । ଖୁବ୍ ଅଳ୍ପ ବୟସରେ ତାଙ୍କର ଇଂରାଜୀ ସାହିତ୍ୟରେ ଦଖଲ ଆସିଯାଇଥିଲା । ବିଜ୍ଞାନ ପାଠ କରିବା ନିମନ୍ତେ ତାଙ୍କର ପ୍ରବଳ ଆଗ୍ରହଜାତ ହେବା ଫଳରେ ସେ ଅନ୍ୟାନ୍ୟ ବିଷୟ ପ୍ରତି ମନୋଯୋଗ ଦେଇପାରୁ ନ ଥିଲେ । ହାଇସ୍କୁଲରେ ପଢ଼ିବା ସମୟରେ ସେ ଗ୍ୟାନଟ୍‌ଙ୍କର ପଦାର୍ଥ-ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ପାଠ କରି ଶେଷ କରିଦେଇଥିଲେ । ରମଣ ଏତିକରେ ସନ୍ତୁଷ୍ଟ ହେବା ବାଳକ ନୁହନ୍ତି । ପାଠ ପଢ଼ିବାରେ ତାଙ୍କର ଖୁବ୍ ମନ । ବିଶେଷଭାବରେ ବିଜ୍ଞାନ ପଢ଼ାରେ ତାଙ୍କର ବେଶୀ ମନ ଥିଲା ।

ବିଜ୍ଞାନ ତାଙ୍କର ପ୍ରିୟ ବିଷୟ ଥିଲେ ମଧ୍ୟ ତାଙ୍କୁ ଅନ୍ୟାନ୍ୟ ବାଧ୍ୟତାମୂଳକ ବିଷୟମାନ ପଢ଼ିବାକୁ ପଡ଼ୁଥିଲା । ଏହି ସମୟରେ ତାଙ୍କର ସ୍ୱାସ୍ଥ୍ୟ ଭଲ ରହୁ ନ ଥିଲା । ଏହା ଭିତରେ ଆସ୍ୟାର ତାଙ୍କ ପରିବାର ସହିତ ସହର ଭିତରକୁ ଉଠି ଆସିଥିଲେ । ସହରର ଆବହାଓ୍ୱା ରମଣଙ୍କ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନ ଥିବାରୁ ସେ ବେଶୀ ଦୁର୍ବଳ ହୋଇପଡ଼ିଲେ । ବହୁତ କଷ୍ଟରେ ସେ ଏଥିରୁ

ରକ୍ଷାପାଇ ବଞ୍ଚିଗଲେ । ବାରବର୍ଷ ବୟସରେ ଭଗ୍ନସ୍ୱାସ୍ଥ୍ୟରେ ରମଣ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଦୁଇବର୍ଷ ପରେ ରମଣ ଆଇ· ଏ· ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ସେ ଏଇ ପରୀକ୍ଷାରେ ଖୁବ୍ ଉଚ୍ଚ ସ୍ଥାନ ଅଧିକାର କରିପାରିଥିଲେ । ତାଙ୍କର ପଠିତ ବିଷୟମାନଙ୍କ ମଧ୍ୟରେ ପଦାର୍ଥ-ବିଜ୍ଞାନର ସ୍ଥାନ ନ ଥିବା ସତ୍ତ୍ୱେ ସେ ଖୁବ୍ ଭଲ ଫଳ ଦେଖାଇ ପାରିଥିଲେ ।

ଧର୍ମ ବିଷୟରେ ରମଣ ଉଦାସୀନ ଥିଲେ; କିନ୍ତୁ ତାଙ୍କର ପିତା-ମାତା ଧର୍ମପ୍ରାଣ ଥିଲେ । ଡାକ୍ତର ବେସାନ୍ତଙ୍କର ପ୍ରଭାବ-ଫଳରେ ସେ ଧର୍ମ ଏବଂ ସଂସ୍କାର ପ୍ରତି ଆକୃଷ୍ଟ ହୋଇପଡ଼ନ୍ତି । ଏତେବେଳକୁ ତାଙ୍କର ବୟସ ବାରବର୍ଷ ।

ଧର୍ମ ପ୍ରତି ରମଣଙ୍କର ଅତିରିକ୍ତ ଅନୁରାଗ ହେତୁ ବିଜ୍ଞାନପାଠରେ ସ୍ପୃହା କମିଗଲା । ସେ ଏପରି ଉତ୍ସାହିତ ହୋଇପଡ଼ିଲେ ଯେ ଧର୍ମ-ସମ୍ବନ୍ଧୀୟ ପୁସ୍ତକମାନ ମନପ୍ରାଣ ଦେଇ ପଢ଼ିବାରେ ଲାଗିଗଲେ । ରାମାୟଣ ଓ ମହାଭାରତ, ବିଜ୍ଞାନ ପୁସ୍ତକ ଓ ଯନ୍ତ୍ରପାତିର ସ୍ଥାନ ଅଧିକାର କରିନେଲେ । ଏହି ବିଖ୍ୟାତ ଧର୍ମଗ୍ରନ୍ଥ ଦୁଇଟି ରମଣଙ୍କ ଜୀବନରେ ଗଭୀର ପ୍ରଭାବ ପକାଇଥିଲା । ଧର୍ମପୁସ୍ତକମାନଙ୍କ ସମ୍ବନ୍ଧରେ ତାଙ୍କର ଗଭୀର ଜ୍ଞାନ ଥିଲା । ରମଣ ମାଡ୍ରାସର ପ୍ରେସିଡେନ୍‌ସି କଲେଜରେ ବି· ଏ· ପଢ଼ିବା ସମୟରେ ପୌରାଣିକ କାବ୍ୟ ଉପରେ ଏକ ପ୍ରବନ୍ଧ-ପ୍ରତିଯୋଗିତା ହୋଇଥିଲା । ସେ ଘରଣୀୟ ପୌରାଣିକ କାବ୍ୟ ବିଷୟରେ ଏକ ମୌଳିକ ଏବଂ ସାରଗର୍ଭକ ପ୍ରବନ୍ଧ ଲେଖି ପ୍ରଥମ ପୁରସ୍କାର ଲାଭ କରିଥିଲେ; କିନ୍ତୁ

ଧର୍ମ ପ୍ରତି ରମଣଙ୍କର ଅନୁରାଗ କ୍ଷଣସ୍ଥାୟୀ ଥିଲା । ବିଜ୍ଞାନ ପଢ଼ିବାରେ ଆଗ୍ରହ ତାଙ୍କର ଜନ୍ମଗତ ଥିଲା । ଧର୍ମ ପ୍ରତି ଉତ୍ସାହ କମିଯିବାପରେ ସେ ବିଜ୍ଞାନପାଠ ଆରମ୍ଭ କରିଦେଲେ ।

ଆଇ· ଏ· ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ରମଣ ମାଡ୍ରାସର ପ୍ରେସିଡ଼େନ୍ସି କଲେଜରେ ନାମ ଲେଖାଇଲେ । ଏହି ସମୟରେ ଗୋଟିଏ ମଜାକଥା ଘଟିଥିଲା, ଯାହା ଫଳରେ ରମଣ ଅତି ଶୀଘ୍ର ଜଣାଶୁଣା ହୋଇଗଲେ ।

ଅଧ୍ୟାପକ ଇ· ଏଇଚ୍· ଇଲିଅଟ୍ ପ୍ରଥମ ଦିନ ବି· ଏ· କ୍ଲାସରେ ଇଂରେଜୀ ପଦ୍ୟ ପଢ଼ାଇବାପାଇଁ ଆସି ରମଣଙ୍କୁ ଦେଖିଲେ । ରମଣ ଏତେ ଛୋଟ ଓ ପତଳା ଥିଲେ ଯେ ଅଧ୍ୟାପକ ଇଲିଅଟ୍ ତାଙ୍କୁ ଦେଖି ବି· ଏ· କ୍ଲାସର ଛାତ୍ର ବୋଲି ବିଶ୍ୱାସ କଲେ ନାହିଁ । ସେ ଭାବିଲେ, ପିଲାଟି ଭୁଲରେ କ୍ଲାସ ଭିତରକୁ ପଶିଆସିଛି । ସେ ଏହା ଭାବି ରମଣଙ୍କୁ ପଚାରିଲେ—

"ତୁମେ କ'ଣ ଏହି ଶ୍ରେଣୀର ଛାତ୍ର ?"

ଏହି ପ୍ରଶ୍ନ ଶୁଣି ଗ୍ୟାଲେରୀରୁ ଛାତ୍ରମାନେ ଉଚ୍ଚସ୍ୱରରେ ହସି ଉଠିଲେ ।

"ଆଜ୍ଞା ହଁ ।"—ରମଣ ଉତ୍ତର ଦେଲେ ।

"ତୁମର ବୟସ ?"

"ତେର ।"

"ତୁମେ କେଉଁଠାରେ ଆଇ· ଏ· ପଢ଼ିଥିଲ ?"

"ଓ୍ୱାଲ୍‌ଟିଅରରେ ।"

"ତୁମର ନାମ କ'ଣ ?"

"ଚନ୍ଦ୍ରଶେଖର ଭେଙ୍କଟରମଣ ।"

ରମଣଙ୍କର ଉତ୍ତର ପ୍ରଦାନରେ ଅଧ୍ୟାପକ ସନ୍ତୁଷ୍ଟ ହୋଇଥିଲେ । ଏହି ଘଟଣା ପରେ ସେ ଅଧ୍ୟାପକ ଇଲିଅଟ୍‌ଙ୍କର ପ୍ରିୟ ଛାତ୍ର ହୋଇଗଲେ ।

ଆୟାରଙ୍କ ପରିବାରର ଜଣେ ବନ୍ଧୁ ରମଣଙ୍କୁ ଇତିହାସ ସ୍ୱତନ୍ତ୍ର ବିଷୟ ଭାବରେ ନେବାପାଇଁ ଉପଦେଶ ଦେଇଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ପ୍ରାଦେଶିକ ସରକାରଙ୍କର ଉଚ୍ଚ ଚାକିରୀ ପାଇଁ ପ୍ରତିଯୋଗିତାମୂଳକ ପରୀକ୍ଷାରେ ଇତିହାସ ସାହାଯ୍ୟ କରିବ । ଆୟାର-ପରିବାରରେ ଏ ପର୍ଯ୍ୟନ୍ତ କେହି ସରକାରୀ ଚାକିରିଆ ନ ଥିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ରମଣ ଜଣେ-ଉଚ୍ଚ ସରକାରୀ କର୍ମଚାରୀ ହେବେ; କିନ୍ତୁ ରମଣ ତାଙ୍କର ପ୍ରିୟ ବିଷୟ ପରିତ୍ୟାଗ କରିବା ନିମନ୍ତେ ରାଜିହେଲେ ନାହିଁ । ସେ ସରକାରୀ କାର୍ଯ୍ୟ କରିବା ନିମନ୍ତେ ନିଜର ଅନିଚ୍ଛା ପ୍ରକାଶ କରି ବିଜ୍ଞାନ ପଢ଼ିଥିଲେ ।

ରମଣ ଖୁବ୍ ଚଞ୍ଚଳ ଅଧ୍ୟାପକମାନଙ୍କର ଦୃଷ୍ଟି ଆକର୍ଷଣ କରି-ପାରିଥିଲେ । ଅଧ୍ୟାପକମାନେ ତାଙ୍କର ଜ୍ଞାନର ପ୍ରସାର ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେମାନଙ୍କ ମତରେ ରମଣ ବି. ଏ. କ୍ଲାସର ଛାତ୍ର ହେବାପାଇଁ ବୟସରେ ଛୋଟ ଥିଲେ; କିନ୍ତୁ ବୟସ ଅନୁପାତରେ ସେ ଅଧିକ ଜ୍ଞାନର ଅଧିକାରୀ ଥିଲେ । ଅଧ୍ୟାପକମାନେ ତାଙ୍କୁ ତାଙ୍କର ପ୍ରିୟ ବିଷୟଗୁଡ଼ିକ ପଢ଼ିବା ନିମନ୍ତେ ଅଧିକ ସ୍ୱାଧୀନତା ଦେଇଥିଲେ । ରମଣ ଗଣିତ ଏବଂ ମେକାନିକ୍‌ସ ବିଷୟ ମନୋଯୋଗ ଦେଇ ପଢ଼ୁଥିଲେ । ଏହି ସମୟରେ ଭବିଷ୍ୟତର ମୂଳଦୁଆ ସେ ତିଆରି କରିଥିଲେ ।

ରମଣଙ୍କର ବହି ପଢ଼ିବାରେ ପ୍ରବଳ ଆଗ୍ରହ ଥିଲା ଏବଂ ସେ ଏହି ଅଭ୍ୟାସ କେବେହେଲେ ପରିତ୍ୟାଗ କରି ନ ଥିଲେ । ଦେହ ଖରାପ ହେବା ସମୟରେ ସେ ଶୋଇରହି କୌଣସି ଆଧୁନିକ ଲେଖକଙ୍କର ଉପନ୍ୟାସ ପଢ଼ୁଥିଲେ । ସେ ଖୁବ୍ ଅଳ୍ପ ସମୟ ମଧ୍ୟରେ ବହିଗୁଡ଼ିକ ଶେଷ କରିପାରୁଥିଲେ; କିନ୍ତୁ ଏହି ପୁସ୍ତକ-ପାଠ ତାଙ୍କ ବିଜ୍ଞାନପାଠରେ କୌଣସି ବ୍ୟାଘାତ ସୃଷ୍ଟି କରିପାରି ନ ଥିଲା । କଲେଜରେ ପଢ଼ିବା ସମୟରେ ତାଙ୍କ ବିଷୟର ସମସ୍ତ ଉପାଦେୟ ଅଂଶମାନ ସେ ପଢ଼ିଦେଇଥିଲେ । କଲେଜରେ ବିଜ୍ଞାନାଗାରରେ ଗବେଷଣା କରିବାକୁ ତାଙ୍କର ପ୍ରବଳ ଆଗ୍ରହ ଥିଲେ ମଧ୍ୟ ଏହା ସମ୍ଭବ ନ ଥିଲା, କିନ୍ତୁ ତାଙ୍କୁ ଏହି ସୁବିଧା ଖୁବ୍ ଶୀଘ୍ର ମିଳିଯାଇଥିଲା ।

୧୯୦୪ ମସିହାରେ ସେ ବି. ଏ. ପରୀକ୍ଷାରେ କୃତିତ୍ୱର ସହି ଉତ୍ତୀର୍ଣ୍ଣ ହୋଇଥିଲେ । ବିଜ୍ଞାନରେ ସେହି ବର୍ଷ ରମଣ ପ୍ରଥମ ଶ୍ରେଣୀ ପାଇଥିଲେ । ଅନ୍ୟ କୌଣସି ଛାତ୍ର ସେଇ ବର୍ଷ ପ୍ରଥମ ଶ୍ରେଣୀ ପାଇ ନ ଥିବାରୁ ସେ ବିଶ୍ୱବିଦ୍ୟାଳୟର ଆର୍ଣ୍ଣି ଗୋଲ୍ଡ଼୍ ମେଡ଼ାଲ୍ ପୁରସ୍କାର ପାଇଥିଲେ । ଏହା ବ୍ୟତୀତ ଇଂରାଜୀ ପ୍ରବନ୍ଧ ନିମିତ୍ତ ସେ କଲେଜରୁ ପୁରସ୍କାର ଲାଭ କରିଥିଲେ ।

ବି. ଏ. ପାସ୍ କରିବା ପରେ ପଦାର୍ଥ-ବିଜ୍ଞାନରେ ଏମ୍. ଏ. ପଢ଼ିଥିଲେ । ଏହି ସମୟରେ ସେ ନିଜର ଜ୍ଞାନ ବୃଦ୍ଧି କରିବାରେ ଲାଗିପଡ଼ିଲେ । ଗଣିତଶାସ୍ତ୍ର ପ୍ରତି ତାଙ୍କର ଅନୁରାଗ ଥିଲା ଏବଂ ସେ ଗଣିତରେ ନିଜ ଜ୍ଞାନର ଅଭିବୃଦ୍ଧି ନିମନ୍ତେ ଚେଷ୍ଟା କରନ୍ତି । ପଦାର୍ଥ-ବିଜ୍ଞାନର ଅନେକ ଉପାଦେୟ ଏବଂ ଶ୍ରେଷ୍ଠ ପୁସ୍ତକ ଏହି ସମୟରେ

ପଢ଼ ଶେଷ କରନ୍ତି । ଏହି ପୁସ୍ତକମାନଙ୍କ ମଧ୍ୟରେ ସ୍ୱାଲେଙ୍କର "ଥିଓରି ଅଫ୍ ସାଉଣ୍ଡ୍", ହେମ୍ ହୋଲ୍ଜ୍‌ଙ୍କର "ସେନ୍‌ସେସନସ୍ ଅଫ୍ ଟୋନ୍" ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

ଏମ୍. ଏ. କ୍ଲାସ୍‌ର ଛାତ୍ର ଥିବା ସମୟରେ ରମଣ ବୈଜ୍ଞାନିକ-ଭାବରେ ଆତ୍ମପ୍ରକାଶ କରନ୍ତି । ଶବ୍ଦବିଜ୍ଞାନ ପ୍ରତି ମଧ୍ୟ ତାଙ୍କର ଅନୁରକ୍ତି ପ୍ରକାଶ ପାଏ ।

ଥରେ ତାଙ୍କର ବନ୍ଧୁ ଏବଂ ସହପାଠୀ ଭି ଅପ୍‌ପା ରାଓ ଆଲୋକ-ବିଜ୍ଞାନର ଏକ ପରୀକ୍ଷା କରୁଥିବା ସମୟରେ କେତେକ ଭିନ୍ନ ଜିନିଷର ସମ୍ପର୍କରେ ଆସିଥିଲେ । ସେ ଏହା ଅଧ୍ୟାପକ ଜୋନ୍‌ସଙ୍କୁ ପଚାରିବାରୁ ଅଧ୍ୟାପକ ଆଶ୍ଚର୍ଯ୍ୟ ହେଲେ ଏବଂ ଏହି ବିଷୟରେ କୌଣସି ସମାଧାନ କରିପାରିଲେ ନାହିଁ । ରମଣ ଅନେକ ଭାବିଚିନ୍ତି ଏକ ସମାଧାନରେ ଉପନୀତ ହେଲେ । ଏହି ସମାଧାନ କେତେଦୂର ଠିକ୍ ହେଲା, ତାହା ବୁଝିବାପାଇଁ ଜଣେ ପ୍ରସିଦ୍ଧ ଇଂରେଜ ବୈଜ୍ଞାନିକଙ୍କ ନିକଟକୁ ଲେଖିଲେ । ସେ ରମଣଙ୍କ ନିକଟକୁ ଏକ ପତ୍ର ଲେଖି ନିଜର ଅଭିନନ୍ଦନ ଜଣାଇଲେ । ସେ ରମଣଙ୍କର ସମାଧାନକୁ ପ୍ରଶଂସା କରିଥିଲେ । ଏହି ସମାଧାନ ବିଜ୍ଞାନୀମାନଙ୍କର ମନ ସ୍ପର୍ଶ କରିଥିଲା । ରମଣ ଏହି ପରୀକ୍ଷା ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖି ସଂଶୋଧନପାଇଁ ଅଧ୍ୟାପକ ଜୋନ୍‌ସଙ୍କୁ ଦେଲେ; କିନ୍ତୁ ଅଧ୍ୟାପକ ଏହି ପ୍ରବନ୍ଧଟିର ଗୁରୁତ୍ୱ ଉପଲବ୍ଧ ନ କରି ସଂଶୋଧନରେ ଅଯଥା ବିଳମ୍ବ କଲେ । ରମଣଙ୍କର ଧୈର୍ଯ୍ୟଚ୍ୟୁତି ହେଲା । ସେ ଏକ କୌଶଳର ଆଶ୍ରୟ ନେଲେ । ପ୍ରବନ୍ଧଟି ପୁନର୍ବାର ଲେଖିବା ନିମନ୍ତେ ଇଚ୍ଛା ପ୍ରକାଶ କରି ସେ ଅଧ୍ୟାପକଙ୍କଠାରୁ

ସେଇଟି ମାଗିଆଣି ବିଲାତର ଏକ ବିଜ୍ଞାନ ପତ୍ରିକାକୁ ପଠାଇ-ଦେଲେ । ଏହି ପତ୍ରିକାଟିର ନାମ—'ଦି ଫିଲଜଫିକାଲ ମାଗାଜିନ' । ପରେ ଉକ୍ତ ପ୍ରବନ୍ଧଟି ସେହି ପତ୍ରିକାରେ ପ୍ରକାଶ ପାଇଲା । ରମଣ ଆନନ୍ଦରେ ଅଧୀର ହୋଇ ଅଧ୍ୟାପକଙ୍କ ନିକଟକୁ ଦଉଡ଼ିଗଲେ । ଜୋନ୍ସ ଏହା ଦେଖି ଅତିଶୟ ବିସ୍ମିତ ହୋଇଗଲେ । ଏମ୍. ଏ. ଶ୍ରେଣୀର ଶେଷବର୍ଷର ଛାତ୍ର ଥିବା ସମୟରେ 'ନେଚର', ନାମକ ଅନ୍ୟ ଏକ ବିଶିଷ୍ଟ ବିଜ୍ଞାନ ପତ୍ରିକାରେ ତାଙ୍କର ଆଉ ଏକ ପ୍ରବନ୍ଧ ପ୍ରକାଶ ପାଏ । ସେ ଯେ ଭବିଷ୍ୟତରେ ଜଣେ ବିଶିଷ୍ଟ ବୈଜ୍ଞାନିକ ହୋଇପାରିବେ ଏହାର ସ୍ପଷ୍ଟ ସୂଚନା ମିଳିଥିଲା । ଛାତ୍ରାବସ୍ଥାରେ ସେ ଯେଉଁ ଦୁଇଟି ପ୍ରବନ୍ଧ ପ୍ରକାଶ କରିଥିଲେ, ତାହା ତାଙ୍କ କର୍ମମୟ ଜୀବନର ପ୍ରଥମ ସୋପାନ ଥିଲା । ବୈଜ୍ଞାନିକ ଗବେଷଣା କରିବା ଆଗ୍ରହ ତାଙ୍କର ବଢ଼ିଯାଇଥିଲା ।

ଛାତ୍ରାବସ୍ଥାରେ ରମଣ ଜଣେ ମେଧାବୀ ଛାତ୍ର ଥିଲେ । ୧୯୦୭ ମସିହାରେ ରମଣ ପଦାର୍ଥ ବିଦ୍ୟାରେ ଏମ୍. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ, ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ସେ ଏହି ପରୀକ୍ଷାରେ ନୂତନ ରେକର୍ଡ଼ ସୃଷ୍ଟି କରିପାରିଥିଲେ । ତାଙ୍କ ପୂର୍ବରୁ କେହି ପଦାର୍ଥ ବିଦ୍ୟାରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀ ପାଇ ନ ଥିଲେ ।

ଅଧ୍ୟାପକ ଜୋନ୍ସ୍ ରମଣଙ୍କର ଧୀମତ୍ତାର ପରିଚୟ ପାଇ [illegible]ଥିଲେ । ସେ ତାଙ୍କ ପ୍ରିୟ ଛାତ୍ରର ଭବିଷ୍ୟତ ଉନ୍ନତିପାଇଁ ବ୍ୟସ୍ତ ହୋଇପଡ଼ିଥିଲେ । ରମଣ ବିଲାତର କୌଣସି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାର ସୁଯୋଗ ଲାଭ କଲେ

ଭବିଷ୍ୟତରେ ଜଣେ ବିଶିଷ୍ଟ ବୈଜ୍ଞାନିକ ହୋଇପାରିବେ ବୋଲି ତାଙ୍କର ବିଶ୍ୱାସ ଥିଲା । ତେଣୁ ରମଣଙ୍କର ଉଚ୍ଚଶିକ୍ଷା ଓ ଟ୍ରେନିଂ ପାଇବା ନିମନ୍ତେ ସମସ୍ତ ସୁବିଧା କରିଦେବାପାଇଁ ସେ ମାନ୍ଦ୍ରାଜ ସରକାରଙ୍କୁ ଅନୁରୋଧ କଲେ । ସରକାର ଅଧ୍ୟାପକଙ୍କର ସୁପାରିଶ ଗ୍ରହଣ କରି ରମଣଙ୍କ ନିମନ୍ତେ ଗୋଟିଏ ବୃତ୍ତି ଦେବା ପାଇଁ ସ୍ୱୀକୃତ ହେଲେ । ବିଲାତ ଯିବା ପୂର୍ବରୁ ସ୍ୱାସ୍ଥ୍ୟ ବିଷୟରେ ଏକ ପ୍ରମାଣପତ୍ର ଡାକ୍ତରଙ୍କଠାରୁ ପାଇବା ଦରକାର ହୁଏ । ବିଲାତ ଶୀତପ୍ରଧାନ ଦେଶ । ଜଳବାୟୁର ପରିବର୍ତ୍ତନ ଫଳରେ ଅନେକ ସମୟରେ ସ୍ୱାସ୍ଥ୍ୟ ଭଗ୍ନହେବାର ଆଶଙ୍କା ଥାଏ । ତେଣୁ ବିଲାତ ଯିବା ପୂର୍ବରୁ ସମସ୍ତଙ୍କୁ ଏହି ପ୍ରମାଣପତ୍ର ଦାଖଲ କରିବାକୁ ପଡ଼ିଥାଏ ।

ସମସ୍ତଙ୍କର ଧାରଣା ଥିଲା, ସାର୍ଟିଫିକେଟ ସୁବିଧାରେ ମିଳିଯିବ; କିନ୍ତୁ କାର୍ଯ୍ୟରେ ଏହା ଘଟିଲା ନାହିଁ । ଜଣେ ସାହେବ ଆଇ. ଏମ୍. ଏସ୍. ଅଫିସର ରମଣଙ୍କୁ ପରୀକ୍ଷା କରିବା ନିମିତ୍ତ ନିଯୁକ୍ତ ହେଲେ । ସେ ରମଣଙ୍କ ଦୁର୍ବଳ ଶରୀର ଦେଖି ତାଙ୍କୁ ବିଲାତ ଯିବାର ଆଶା ପରିତ୍ୟାଗ କରିବାପାଇଁ ଉପଦେଶ ଦେଲେ । ରମଣ ବିଲାତ ଗଲେ ତାଙ୍କର ଜୀବନ ରକ୍ଷା ଅସମ୍ଭବ ହୋଇପାରେ ବୋଲି ମତ ଦେଲେ । ଏଥିପାଇଁ ବାଧ୍ୟହୋଇ ରମଣ ବିଲାତ ଯିବାର ବାସନା ପରିତ୍ୟାଗ କଲେ । ସମସ୍ତ ଉଚ୍ଚ ଆଶା ନିରାଶାରେ ପରିଣତ ହେଲା ।

ରମଣ ବର୍ତ୍ତମାନ କେଉଁ ପନ୍ଥା ଅବଲମ୍ବନ କରିବେ, ତାହା ସ୍ଥିର କରିପାରିଲେ ନାହିଁ । ତାଙ୍କର ଅଧ୍ୟାପକ କିମ୍ବା ଓକିଲ

ହେବାକୁ ଇଚ୍ଛା ନଥିଲା । ବଙ୍କିମଚନ୍ଦ୍ର ତାଙ୍କର ପ୍ରିୟ ବନ୍ଧୁ ଥିଲେ ମଧ୍ୟ ସେ ଏହା ପରିତ୍ୟାଗ କରିବା ନିମନ୍ତେ ବାଧ୍ୟ ହେଲେ । ସେତେବେଳେ ଭାରତ ସରକାରଙ୍କ ଅର୍ଥ ବିଭାଗରେ ଭଲ ଚାକିରି ମିଳୁଥିଲା । ଏଥିପାଇଁ ଏକ ପ୍ରତିଯୋଗିତାମୂଳକ ପରୀକ୍ଷା ହୁଏ । ରମଣ ବର୍ତ୍ତମାନ ଏହି ପରୀକ୍ଷା ଦେବାପାଇଁ ସ୍ଥିର କଲେ । ଏହି ସମୟକୁ ତାଙ୍କର ଏମ୍. ଏ. ପରୀକ୍ଷା ସରିଛି, ଫଳ ବାହାରି ନାହିଁ । ପରୀକ୍ଷାରେ ନିଜର କୃତିତ୍ୱ ଅକ୍ଷୁର୍ଣ୍ଣ ରଖିବା ନିମନ୍ତେ ସେ ଦୃଢ଼ସଂକଳ୍ପ କଲେ । ପରୀକ୍ଷାପାଇଁ ପ୍ରସ୍ତୁତ ହେବାକୁ ସେ କଲିକତା ଗଲେ । ରମଣଙ୍କୁ ଏହି ପରୀକ୍ଷାପାଇଁ ଅର୍ଥଶାସ୍ତ୍ର ସଂସ୍କୃତ ଓ ଇତିହାସ ପଢ଼ିବାକୁ ପଡ଼ିଥିଲା । ଏହି ବିଷୟଗୁଡ଼ିକ ତାଙ୍କ ପାଖରେ ନୂତନ ଥିଲା । ଏତେଗୁଡ଼ିଏ ନୂତନ ବିଷୟ ଆୟତ୍ତ କରି ପରୀକ୍ଷାରେ ସଫଳତା ଲାଭ କରିବା ସହଜ କଥା ନଥିଲା; କିନ୍ତୁ ରମଣ ସେଥିପ୍ରତି ଭ୍ରୂକ୍ଷେପ କରୁନଥିଲେ । ସେ ପରିଶ୍ରମକାତର ନ ଥିଲେ; ତେଣୁ ପରୀକ୍ଷାରେ ସଫଳତା ଲାଭ କରିବାର ଦୃଢ଼ବିଶ୍ୱାସ ତାଙ୍କର ଥିଲା ।

*

ପରୀକ୍ଷା ଦେବାର ପୂର୍ବଦିନ ସେ ଏମ୍. ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିବା ସମ୍ବାଦ ପାଇଥିଲେ । ଏହି ସମ୍ବାଦ ପାଇ ତାଙ୍କ ମନରେ ଖୁବ୍ ଉତ୍ସାହ ଆସିଗଲା । ପ୍ରତିଯୋଗିତା ପରୀକ୍ଷା ଦେବାପାଇଁ ସେ ଅତ୍ୟଧିକ ଉତ୍ସାହିତ ହୋଇପଡ଼ିଲେ । ଏହି ପରୀକ୍ଷାରେ ରମଣ ପ୍ରଥମ ସ୍ଥାନ ଅଧିକାର କରି ଅର୍ଥ ବିଭାଗରେ ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ ଭାବରେ ନିଯୁକ୍ତ ହେଲେ । ରମଣଙ୍କ ପୂର୍ବରୁ ଅନ୍ୟ କୌଣସି ବ୍ୟକ୍ତି ଏତେ ଅଳ୍ପ ବୟସରେ ଏପରି ଉଚ୍ଚ ସମ୍ମାନ ଲାଭ କରି ନ ଥିଲେ । ସେ ଅଫିସ୍‌ର ସମସ୍ତ କାର୍ଯ୍ୟ ସୁରୁଖୁରୁରେ ସମ୍ପନ୍ନ କରୁଥିଲେ ।

ଗ୍ରାଜୁଏଟ କରିବାପରେ ରମଣଙ୍କ ବିବାହ-ପ୍ରସ୍ତାବ ଆସିଗଲା । ଅବଶେଷରେ ଏକ କୁଳୀନ ବ୍ରାହ୍ମଣ-ପରିବାରରେ ରମଣଙ୍କର ବିବାହ ସ୍ଥିର ହେଲା । ଯେଉଁ ପରିବାରରେ ରମଣଙ୍କର ବିବାହ ସ୍ଥିର ହେଲା, ସେମାନେ ରମଣଙ୍କ ସମ୍ପ୍ରଦାୟ ଅପେକ୍ଷା ନିଜକୁ ଉଚ୍ଚଜାତୀୟ ବୋଲି ଭାବୁଥିଲେ । ତେଣୁ ଏହି ବିବାହରେ କନ୍ୟାପିତା କୃଷ୍ଣସ୍ୱାମୀ ଆୟାର ଅସମ୍ମତ ହେଲେ; କିନ୍ତୁ କନ୍ୟାମାତା ରମଣଙ୍କୁ ଦେଖି ଏପରି ମୁଗ୍ଧା ହୋଇଯାଇଥିଲେ ଯେ ସେ ଏହି ବିବାହ ହେବାନିମନ୍ତେ ଜିଦ୍‌ଧରି ବସିଲେ । ଶେଷରେ ଏହି ବିବାହ ସ୍ଥିର ହୋଇଗଲା । ମାନ୍ଦ୍ରାଜରେ ଏହି ବିବାହ ଅନୁଷ୍ଠିତ ହୋଇ-ଥିଲା । ରକ୍ଷଣଶୀଳମାନେ ଏହି ବିବାହ ସପକ୍ଷରେ ନ ଥିଲେ; କିନ୍ତୁ ପ୍ରଗତିଶୀଳ ଯୁବକମାନେ ଏହି ପ୍ରକାର କାର୍ଯ୍ୟର ପ୍ରଶଂସା କରିଥିଲେ । ରମଣଙ୍କର ସ୍ତ୍ରୀଙ୍କ ନାମ ତ୍ରିଲୋକସୁନ୍ଦରୀ । ରମଣଦମ୍ପତି ଏହି ବିବାହରେ ଖୁବ୍ ସୁଖୀ ହୋଇଥିଲେ ।

ରମଣ ପ୍ରଥମେ କଲିକତାରେ ଚାକିରୀରେ ଯୋଗଦାନ କରନ୍ତି । ଏହିଠାରେ ସେ ଅଫିସ ସମ୍ବନ୍ଧୀୟ ସମସ୍ତ କାର୍ଯ୍ୟ ଶିକ୍ଷା କରି ବିଭିନ୍ନ ବିଷୟରେ ଅଭିଜ୍ଞତା ଅର୍ଜ୍ଜନ କରନ୍ତି । ରମଣଙ୍କ କାର୍ଯ୍ୟରେ ତାଙ୍କର ଉପରିସ୍ଥ କର୍ମଚାରୀମାନେ ସନ୍ତୁଷ୍ଟ ଥିଲେ । ସେ ଅନେକ ସମୟରେ ଉପରିସ୍ଥ କର୍ମଚାରୀ ଓ ଭାରତ ସରକାରଙ୍କର ଅର୍ଥନୈତିକ ସଦସ୍ୟଙ୍କଠାରୁ ପ୍ରଶଂସା ଲାଭ କରିଥିଲେ । ସେକ୍ରେଟାରିଏଟ୍‌ର ଅର୍ଥ ବିଭାଗରେ ଯୋଗ ଦେବାପାଇଁ ତାଙ୍କୁ

ସୁଯୋଗ ମିଳିଥିଲା; କିନ୍ତୁ ସେ ଏହି ସୁଯୋଗ ଗ୍ରହଣ କଲେ ନାହିଁ । ସେ ପଦ, ସମ୍ମାନ କିମ୍ବା ଅର୍ଥପାଇଁ ଲାଳାୟିତ ନ ଥିଲେ । ବିଜ୍ଞାନ ଚର୍ଚ୍ଚା ତାଙ୍କ ମନ ଅଧିକାର କରିନେଇଥିଲା । ବୈଜ୍ଞାନିକ ଗବେଷଣା ତାଙ୍କ ଜୀବନର ଥିଲା ଚରମ ଲକ୍ଷ୍ୟ । ଏହି ସୁବିଧା ତାଙ୍କୁ ଅଦୂର ଭବିଷ୍ୟତରେ ମିଳିଯାଇଥିଲା ।

ଅଫିସ୍ କାର୍ଯ୍ୟରେ ରମଣଙ୍କର ଅଧିକାଂଶ ସମୟ ଅତିବାହିତ ହେଉଥିଲେ ମଧ୍ୟ ବିଜ୍ଞାନ ଚର୍ଚ୍ଚା ନିମନ୍ତେ ସେ ଅଧିକ ପରିଶ୍ରମ କରିବାକୁ ପ୍ରସ୍ତୁତ ଥିଲେ । ଦିନେ ସେ ଅଫିସରୁ ଘରକୁ ଟ୍ରାମରେ ଫେରୁଥାନ୍ତି । ଏହି ସମୟରେ ରାସ୍ତାକଡ଼ରେ ଏକ ସାଇନବୋର୍ଡ ତାଙ୍କ ଦୃଷ୍ଟି ଆକର୍ଷଣ କଲା । ସେଥିରେ ଲେଖାଥିଲା—'ଭାରତୀୟ ବିଜ୍ଞାନ ସଂସଦ'—**Indian Association for the Cultivation of Science'** । ଏହା ଦେଖିବାମାତ୍ରେ ତାଙ୍କର ଆଗ୍ରହ ବଢ଼ିଗଲା । ସେ ଟ୍ରାମରୁ ଓହ୍ଲାଇ ପଡ଼ି ସେହି ଘରଆଡ଼କୁ ଗ୍ଲଲେ । ବିଜ୍ଞାନ ସଂସଦର ସଭା ଠିକ୍ ସେହି ସମୟରେ ସରିଥାଏ । ଏହି ସଭାରେ କଲିକତାର ଅନେକ ବୈଜ୍ଞାନିକ ଏବଂ ସାର୍ ଆଶୁତୋଷ ମୁଖାର୍ଜି ଉପସ୍ଥିତ ଥିଲେ । ଡାକ୍ତର ମହେନ୍ଦ୍ରଲାଲ ସରକାର ଏହି ଅନୁଷ୍ଠାନର ପ୍ରତିଷ୍ଠାତା । ତାଙ୍କ ପୁତ୍ର ଡାକ୍ତର ଅମୃତଲାଲ ସରକାର ଉକ୍ତ ଅନୁଷ୍ଠାନର ଅବୈତନିକ ସମ୍ପାଦକ ଥିଲେ । ବିଜ୍ଞାନ ସଂସଦର ନିୟମାବଳୀ ଓ ଅନ୍ୟାନ୍ୟ ବିଷୟରେ ତାଙ୍କ ସହିତ ଆଲୋଚନା କରିବାକୁ ସମୟ ସ୍ଥିର କରି ରମଣ ସେଦିନ ଘରକୁ ଫେରିଲେ ।

ରମଣ ଏହି ଘଟଣାର ପରଦିନ ସମ୍ପାଦକଙ୍କ ସହିତ ଦେଖାକରି ଇଂରାଜୀ ବିଜ୍ଞାନ ପତ୍ରିକାରେ ପ୍ରକାଶିତ ତାଙ୍କର ପ୍ରବନ୍ଧ-

ଗୁଡ଼ିକ ଦେଖାଇଥିଲେ । ନିଜର ଉଦ୍ଭାବିତ ଗବେଷଣା ସମ୍ପର୍କରେ ସମ୍ପାଦକଙ୍କୁ ବିଶଦଭାବରେ ବୁଝାଇଦେଇଥିଲେ । ରମଣଙ୍କ ମୌଳିକ ରଚନାରେ ମୁଗ୍ଧ ହୋଇ ଡାକ୍ତର ସରକାର ତାଙ୍କୁ ସବୁ ପ୍ରକାର ସାହାଯ୍ୟ କରିବେ ବୋଲି ଇଚ୍ଛା ପ୍ରକାଶ କଲେ । ରମଣ ବିଜ୍ଞାନ ପରିଷଦର ସଭ୍ୟ ହୋଇ ସକାଳ ଓ ସନ୍ଧ୍ୟା ସମୟରେ ପରିଷଦର ବିଜ୍ଞାନାଗାରରେ ଗବେଷଣା କରିବାକୁ ଲାଗିଲେ ।

ରମଣଙ୍କ ବୈଜ୍ଞାନିକ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଅଫିସ୍ କାର୍ଯ୍ୟ ସମୟ ବ୍ୟତୀତ ସେ ଅଧିକାଂଶ ସମୟ ପରିଷଦର ବିଜ୍ଞାନାଗାରର ଗବେଷଣାରତ ରହୁଥିଲେ । ସେ ଏହି ସମୟରେ ଅନେକ ନୂତନ ବୈଜ୍ଞାନିକ ତଥ୍ୟ ଉଦ୍ଭାବନ କରିପାରିଥିଲେ । ଏହି ତଥ୍ୟଗୁଡ଼ିକ ପରିଷଦ ପକ୍ଷରୁ ବୁଲେଟିନ୍ ଆକାରରେ ପ୍ରକାଶ କରାଯାଏ । ରମଣ ଶବ୍ଦ-ବିଜ୍ଞାନ ସମ୍ବନ୍ଧରେ କେତେଗୁଡ଼ିଏ ପ୍ରବନ୍ଧ ପ୍ରକାଶ କରନ୍ତି । ବୈଜ୍ଞାନିକ ଚର୍ଚ୍ଚା କ୍ଷିପ୍ର ଗତିରେ ଆଗେଇ ଚାଲେ । ନିଷ୍ଠାପର ଗବେଷଣା ଓ ବୁଦ୍ଧିର ତୀକ୍ଷ୍ଣତା ତାଙ୍କୁ ବିଜ୍ଞାନୀ ମହଲରେ ପ୍ରିୟ କରିଦିଏ ।

ଏହି ସମୟରେ ସେ କଲିକତାର ତତ୍କାଳୀନ କୁଳପତି ସାର୍ ଆଶୁତୋଷ ମୁଖାର୍ଜିଙ୍କର ସମ୍ପର୍କରେ ଆସନ୍ତି । ଉଭୟଙ୍କ ମଧ୍ୟରେ ବନ୍ଧୁତା ଗଢ଼ିଉଠେ । ଆଶୁତୋଷ ରମଣଙ୍କ ପ୍ରତିଭାର ପରିଚୟ ପାଇ ତାଙ୍କୁ ନାନାଭାବରେ ଉତ୍ସାହିତ କରନ୍ତି । ସାର୍ ଗୁରୁଦାସ ବାନାର୍ଜିଙ୍କ ସହିତ ମଧ୍ୟ ରମଣଙ୍କର ପରିଚୟ ହୁଏ । ଗୁରୁଦାସଙ୍କର ସାହଚର୍ଯ୍ୟ ଓ ସହାନୁଭୂତି ରମଣଙ୍କୁ ଉତ୍ସାହିତ କରେ ।

ରମଣ କିନ୍ତୁ ବେଶୀ ଦିନ ବୈଜ୍ଞାନିକ ଚର୍ଚ୍ଚା କରିବାର ସୁଯୋଗ ପାଆନ୍ତି ନାହିଁ । ତିନି ବର୍ଷ ପରେ ତାଙ୍କୁ ବଦଳି ହେବାର ଆଦେଶ ମିଳେ । କଲିକତା ଛାଡ଼ିବାକୁ ଇଚ୍ଛା ନ ଥିଲେ ମଧ୍ୟ ବାଧ୍ୟହୋଇ ରେଙ୍ଗୁନ ପଥର ଯାତ୍ରୀ ହୁଅନ୍ତି । ବୈଜ୍ଞାନିକ ଗବେଷଣାରୁ ବଞ୍ଚିତ ହୋଇ ସେ ଦୁଃଖରେ ମ୍ରିୟମାଣ ହୋଇପଡ଼ନ୍ତି ।

ରେଙ୍ଗୁନ ବଦଳି ହେବା ଫଳରେ ବିଜ୍ଞାନ-ଗବେଷଣାରେ ବାଧା ଆସିଥିଲା, ହେଲେ ରମଣ ହତାଶ ହେବା ବ୍ୟକ୍ତି ନୁହନ୍ତି । ସେ ନିଜ ବ୍ୟୟରେ ରେଙ୍ଗୁନରେ ଗୋଟିଏ କ୍ଷୁଦ୍ର ବିଜ୍ଞାନାଗାର ସ୍ଥାପନକରି ଗବେଷଣା କରିବାକୁ ଲାଗିଲେ । ନୂଆ କଥା ଜାଣିବା ନିମନ୍ତେ ରମଣ ଖୁବ୍ ଉତ୍ସାହୀ ଥିଲେ । ଦିନେ ଜଣେ ଲୋକ ରମଣଙ୍କୁ ଆସି ଖବର ଦେଲେ ଯେ ରେଙ୍ଗୁନଠାରୁ ଚଉଦ ମାଇଲ ଦୂର ଏକ ସହରକୁ ଗୋଟିଏ ନୂଆ ରକମର ଯନ୍ତ୍ର ବିଲାତରୁ ଆସିଛି । ସେତେବେଳକୁ ରାତି ବାରଟା । ରମଣ ସଙ୍ଗେ ସଙ୍ଗେ ସେହି ଯନ୍ତ୍ର ଦେଖିବା ନିମିତ୍ତ ବାହାରିପଡ଼ିଲେ । ନିଜ ସ୍ତ୍ରୀଙ୍କର ବାରଣ ସତ୍ତ୍ୱେ ସେ ରାତିରେ ଚାଲି ଚାଲି ଯାଇ ସେହି ସହରରେ ପହଞ୍ଚିଲେ । ଯନ୍ତ୍ରଟି ଦେଖିସାରି ସକାଳେ ଘରକୁ ଫେରିଲେ । ବିଜ୍ଞାନଚର୍ଚ୍ଚା ସହିତ ଅଫିସ୍ କାର୍ଯ୍ୟ ସମାନ ଗତିରେ ଅଗ୍ରସର ହେଉଥିଲା । ସେ କେବେହେଲେ କର୍ତ୍ତବ୍ୟରେ ଅବହେଳା କରୁ ନ ଥିଲେ ।

ରେଙ୍ଗୁନରେ କିଛି ଦିନ ରହିବା ପରେ ସେ ପିତାଙ୍କର ମୃତ୍ୟୁସମ୍ବାଦ ପାଇଥିଲେ । ଏହି ସମ୍ବାଦ ପାଇ ସେ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲେ । ସ୍ନେହଶୀଳ ପିତାଙ୍କର ଉତ୍ସାହ ଓ ପ୍ରେରଣା ତାଙ୍କର ଚକ୍ଷୁସମକ୍ଷରେ ଭାସିଉଠିଲା । ସେ ଛଅମାସ ଛୁଟି

ନେଇ ମାନ୍ଦ୍ରାଜ ଯାତ୍ରା କଲେ । ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରି ସେ ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜର ବିଜ୍ଞାନାଗାରରେ ଗବେଷଣାରେ ରତ ରହିଲେ ।

ଛୁଟି ସରିଗଲାପରେ ରମଣ ନାଗପୁରକୁ ବଦଳିହେଲେ । ସେ ନାଗପୁରରେ ପହଞ୍ଚିବା ପରେ ସେଠାରେ ଭୀଷଣ ପ୍ଲେଗ୍ ଆରମ୍ଭ ହେଲା । ଅସଂଖ୍ୟ ଲୋକ ମୃତ୍ୟୁମୁଖରେ ପତିତ ହେଲେ । ରମଣ ନିଜ ଅଫିସ୍ ହତା ମଧ୍ୟରେ ତମ୍ବୁ ପକାଇ ସେଠାରେ ସମସ୍ତ କର୍ମଚାରୀ ରହିବାର ସୁବିଧା କରିଦେଲେ । ସେମାନଙ୍କ ଖାଦ୍ୟ-ପେୟ ଓ ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ କରିଥିଲେ । ନିଜେ ଆହାର-ନିଦ୍ରା ତ୍ୟାଗ କରି ସେମାନଙ୍କର ଯତ୍ନ ନେଇଥିଲେ । କିଛି ଦିନପରେ ସହରରୁ ପ୍ଲେଗ୍ ରୋଗ ନିର୍ଶ୍ଚିହ୍ନ ହୋଇଗଲା ।

ରମଣ ଜଣେ ଦକ୍ଷ ଶାସକ ଥିଲେ । ସେ ନିଷ୍ଠାପର ଓ କଠୋର ନିୟମାନୁବର୍ତ୍ତୀ ଥିବାରୁ ଅନେକ ସମୟରେ କର୍ମଚାରୀମାନଙ୍କର ବିରାଗଭାଜନ ହେଉଥିଲେ; ମାତ୍ର ସମସ୍ତେ ତାଙ୍କ ଗୁଣରେ ମୁଗ୍ଧ ଥିଲେ । ସେ ନାଗପୁରରେ ଦେଖିଲେ ସେ ଜଣେ ତଳିଆ କର୍ମଚାରୀ ତାଙ୍କ ଅଫିସ୍‌ରେ ସର୍ବେସର୍ବା ହୋଇ ଅଫିସ୍‌ର ସମସ୍ତ କାର୍ଯ୍ୟ ପରିଚାଳନା କରୁଛନ୍ତି । ରମଣ ସେହି କର୍ମଚାରୀଙ୍କଠାରୁ ସମସ୍ତ ସୁବିଧା କାଢ଼ିନେଇ ତାଙ୍କର ପ୍ରାପ୍ୟ କ୍ଷମତା ତାଙ୍କୁ ଦେଇଥିଲେ । ସେହି କର୍ମଚାରୀ ରମଣଙ୍କ ବିପକ୍ଷରେ ଏକ ଦଳ ସୃଷ୍ଟି କରି ତାଙ୍କ ବିରୁଦ୍ଧରେ ମିଥ୍ୟା ସମ୍ବାଦମାନ ପ୍ରଚାର କରିଥିଲେ । ରମଣଙ୍କ ବିଭାଗର ସର୍ବୋଚ୍ଚ କର୍ତ୍ତାଙ୍କ ନିକଟରେ ଅଭିଯୋଗ ହେଲା । ସର୍ବୋଚ୍ଚ କର୍ତ୍ତା ଏହି ସମ୍ବନ୍ଧରେ ତଦନ୍ତ କରି ରମଣଙ୍କ କାର୍ଯ୍ୟ-

କଳାପରେ ସନ୍ତୁଷ୍ଟ ହେଲେ । ଅନ୍ଧଯୋଗକାରୀମାନେ ଉପଯୁକ୍ତ ଶାସ୍ତି ପାଇଥିଲେ ।

ରମଣ ନମ୍ର ଓ ମେଳାପି ବ୍ୟକ୍ତି ଥିଲେ । ସେ ସାଧ୍ୟମତେ ଅନ୍ୟମାନଙ୍କୁ ସାହାଯ୍ୟ କରୁଥିଲେ । ଥରେ ଜଣେ ଭଦ୍ରବ୍ୟକ୍ତି ଦରପୋଡ଼ା ନୋଟ୍‌ଗୁଡ଼ିଏ ଆଣି ତାଙ୍କ ପାଖରେ ପହଞ୍ଚିଥିଲେ । ରମଣ କଠିନ ପରିଶ୍ରମ କରି ନୋଟ୍‌ଗୁଡ଼ିକର କ୍ରମିକ ନମ୍ବର ବାହାର କରି ନୂତନ ନୋଟ୍ ଦେବାପାଇଁ ଅନୁମତି ଦେଇଥିଲେ । ସେହି ଭଦ୍ରବ୍ୟକ୍ତି ରମଣଙ୍କ ପରିଶ୍ରମ ହେତୁ ଦରପୋଡ଼ା ନୋଟ୍‌ର ବଦଳରେ ନୂଆ ନୋଟ୍ ପାଇଲେ ।

ନାଗପୁରରେ ଥିବା ସମୟରେ ସେ ବୈଜ୍ଞାନିକ ଗବେଷଣାରୁ ନିବୃତ୍ତ ନ ଥିଲେ । ନିଜ ଗୃହର ଗୋଟିଏ ଅଂଶରେ ବିଜ୍ଞାନାଗାର ନିର୍ମାଣ କରି ଗବେଷଣା କରୁଥିଲେ । ଏହି ସମୟରେ ତାଙ୍କର କେତେକ ମୌଳିକ ରଚନା ପ୍ରକାଶ ପାଇଥିଲା ।

ନାଗପୁରରେ କିଛି ବର୍ଷ ରହିବାପରେ ୧୯୧୧ ମସିହାରେ କଲିକତାକୁ ବଦଳି ହେଲେ । ଏହି ସମ୍ବାଦରେ ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । କଲିକତା ସମ୍ବନ୍ଧରେ ସେ କହିଛନ୍ତି "ଏହି ସହର ମୋପାଇଁ ଉପଯୁକ୍ତ ସ୍ଥାନ ।" ସେ ପୃଥିବୀର ଅନେକ ଦେଶ ଓ ସହରରେ ବାସ କରିଛନ୍ତି ; କିନ୍ତୁ କଲିକତା ତାଙ୍କର ପ୍ରିୟ ସହର । କଲିକତା ଆସିବାପୂର୍ବରୁ ସେ ଅନେକ ମୌଳିକ ରଚନା ଲେଖି ବୈଜ୍ଞାନିକ ଭାବରେ ଖ୍ୟାତି ଲାଭ କରିଥିଲେ । କଲିକତା ଫେରି ସେ ସେଠାର ବିଜ୍ଞାନାଗାରରେ ବୈଜ୍ଞାନିକ ପରୀକ୍ଷା ଆରମ୍ଭ କରିଦେଲେ ।

ପ୍ରଥମ ମହାଯୁଦ୍ଧ ସମୟରେ ସେ ପୂର୍ବତନ ବଙ୍ଗଳା ପ୍ରଦେଶରେ ଡାକ ଓ ତାର ବିଭାଗର ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ୍ ଭାବରେ କାର୍ଯ୍ୟ କରୁଥିଲେ । ୧୯୧୪ ମସିହାରେ ଭାରତୀୟ ବିଜ୍ଞାନ କଂଗ୍ରେସର ଏକ ଅଧିବେଶନ କଲିକତାରେ ହୁଏ । ରମଣ ଏହି ଅଧିବେଶନରେ ଏକ ମୌଳିକ ପ୍ରବନ୍ଧ ପାଠ କରନ୍ତି । ଏହି ପ୍ରବନ୍ଧ ସାର୍ ଆଶୁତୋଷ ମୁଖାର୍ଜି ଏବଂ ଅନ୍ୟାନ୍ୟ ଶିକ୍ଷାବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରେ ।

କଲିକତା ବିଶ୍ୱବିଦ୍ୟାଳୟର ବିଜ୍ଞାନ କଲେଜରେ ପଦାର୍ଥ-ବିଜ୍ଞାନ ବିଭାଗ ଖୋଲିବାନିମନ୍ତେ ସାର୍ ତାରକନାଥ ପାଲିତ୍ ଅର୍ଥଦାନ କରିଯାଇଥିଲେ । ସାର୍ ଆଶୁତୋଷ ସେତେ-ବେଳେ ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି । ସେ ରମଣଙ୍କୁ ଏହି ସ୍ଥାନ ନିମିତ୍ତ ଉପଯୁକ୍ତ ଭାବି ତାଙ୍କୁ ଏହା ଗ୍ରହଣ କରିବା ନିମନ୍ତେ ଅନୁରୋଧ କଲେ । ରମଣ ଜାଣିଥିଲେ ଯେ ଅର୍ଥଦୃଷ୍ଟିରୁ ସେ ଲାଭବାନ୍‌ହେବେ ନାହିଁ । ବିଜ୍ଞାନଚର୍ଚ୍ଚା ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିବାରୁ କଲିକତା ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ବିଜ୍ଞାନ ଅନୁଷ୍ଠାନରେ ଅଧ୍ୟାପକ ହେବାର ଲୋଭ ସେ ତ୍ୟାଗ କରିପାରିଲେ ନାହିଁ । ସେ ଆନନ୍ଦରେ ନିଜର ସମ୍ମତି ଜଣାଇଲେ ।

ତାଙ୍କର ଆଉ ଗୋଟିଏ ନୂଆ ଅସୁବିଧା ସୃଷ୍ଟି ହେଲା । ସାର୍ ତାରକନାଥ ଟଙ୍କା ଦାନ କରି ଗୋଟିଏ ସର୍ତ୍ତ ରଖିଥିଲେ । ତାହା ହେଉଛି—ଯେଉଁ ବ୍ୟକ୍ତି ଅଧ୍ୟାପକରୂପେ ନିଯୁକ୍ତ ହେବେ, ସେ ଏକ ବୈଦେଶିକ ବିଶ୍ୱବିଦ୍ୟାଳୟରୁ ଉପାଧି ଲାଭ କରିବେ । ରମଣଙ୍କର ଏହିପରି ଉପାଧି ନ ଥିଲା । ତେଣୁ ସାର୍ ଆଶୁତୋଷ ତାଙ୍କୁ

ବିଦେଶକୁ ପଠାଇବାକୁ ଇଚ୍ଛା ପ୍ରକାଶ କଲେ; ମାତ୍ର ରମଣ ଏଥିର ରାଜିହେଲେ ନାହିଁ । ସାର୍ ଗୁରୁଦାସ ମଧ୍ୟ ଏହି ମତର ପ୍ରତିବାଦ କରିଥିଲେ । ସେ କହିଲେ ଯେ ଏହା ଫଳରେ ଭାରତୀୟମାନଙ୍କ ମେଧା ଓ ଶକ୍ତିପ୍ରତି ପ୍ରକୃତ ସମ୍ମାନ ଦେଖାହେବ ନାହିଁ; ତେଣୁ ଏହି ମତ ଗ୍ରହଣ କରିବା ଉଚିତ ନୁହେଁ । ପରିଶେଷରେ ରମଣ ୧୯୧୭ ମସିହାର ଜୁଲାଇ ମାସରେ ସରକାରୀ ଚାକିରି ପରିତ୍ୟାଗ କରି ବିଜ୍ଞାନ କଲେଜର ଅଧ୍ୟାପକ-ପଦରେ ନିଯୁକ୍ତ ହେଲେ ।

ରମଣ ବିଶ୍ୱବିଦ୍ୟାଳୟରେ ଯୋଗ ଦେବା ପରେ ନୂଆ ଉତ୍ସାହରେ କାର୍ଯ୍ୟରେ ଲାଗିଗଲେ । ପଦାର୍ଥବିଜ୍ଞାନରେ ଉଚ୍ଚଶିକ୍ଷା-ପାଇଁ ଅନେକ ଉତ୍ସାହୀ ଯୁବକ ରମଣଙ୍କ ପାଖକୁ ଆସିଲେ । ଏମାନଙ୍କ ମଧ୍ୟରୁ ପରେ କେତେକ ବୈଜ୍ଞାନିକ ଭାବରେ ଖ୍ୟାତିଲାଭ କରିଥିଲେ । ପଦାର୍ଥବିଜ୍ଞାନର ଏକ ଗବେଷଣାଗାର କଲିକତାରେ ଗଢ଼ି ଉଠିଲେ ।

୧୯୧୯ ମସିହା ନଭେମ୍ବର ମାସରେ ଅମୃତଲାଲ ସରକାରଙ୍କର ପରଲୋକ ହେଲା । ତାଙ୍କ ପରେ ରମଣ ଭାରତୀୟ ବିଜ୍ଞାନ ସଂସଦର ସମ୍ପାଦକ ରୂପେ ନିର୍ବାଚିତ ହେଲେ । କଲେଜ ଏବଂ ଏହି ସଂସଦର କାର୍ଯ୍ୟ ସେ ଉତ୍ତମରୂପେ ନିର୍ବାହ କରୁଥିଲେ । ରମଣଙ୍କ ଅଧୀନରେ ଯେଉଁସବୁ ଗବେଷଣା ହେଉଥିଲା, ସେଗୁଡ଼ିକ ଭାରତୀୟ ତଥା ବିଦେଶରେ ବିଭିନ୍ନ ବିଜ୍ଞାନ ପତ୍ରିକାମାନଙ୍କରେ ପ୍ରକାଶ ପାଇଲା । ଏହିସବୁ କାର୍ଯ୍ୟ ଇଉରୋପୀୟ ବୈଜ୍ଞାନିକମାନଙ୍କର ଦୃଷ୍ଟି ଆକର୍ଷଣ କଲା । ରମଣଙ୍କର ସମ୍ମାନ ବଢ଼ିବାକୁ ଲାଗିଲା ।

୧୯୨୧ ମସିହାରେ ଅକ୍ସ୍‌ଫୋର୍ଡ୍‌ଠାରେ ବ୍ରିଟିଶ ସାମ୍ରାଜ୍ୟର ବିଶ୍ୱବିଦ୍ୟାଳୟମାନଙ୍କର ଏକ ଅଧିବେଶନ ହେବାର ସ୍ଥିର ହେଲା । ରମଣ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ ପ୍ରତିନିଧିରୂପେ ବାଛିଗଲେ । ତାଙ୍କର ଏଥିରେ ବିଶେଷ ଆଗ୍ରହ ନ ଥିଲା । ସାର୍ ଆଶୁତୋଷ ବହୁ କଷ୍ଟରେ ତାଙ୍କୁ ରାଜି କରାଇଲେ । ଅବଶେଷରେ ରମଣ ଇଂଲଣ୍ଡପଥର ଯାତ୍ରୀ ହେଲେ ।

ସେ ଅଧିକାଂଶ ସମୟ ଜାହାଜ ଉପରେ ବସିରହି ସମୁଦ୍ରର ବିଭିନ୍ନ ଅବସ୍ଥାର ଦୃଶ୍ୟ ଲକ୍ଷ୍ୟ କରୁଥିଲେ । ସମୁଦ୍ର-ଜଳର ନୀଳବର୍ଣ୍ଣ ତାଙ୍କ ମନରେ ସଂଶୟ ଜନ୍ମାଇଲା । ସମୁଦ୍ରର ଜଳ ରଙ୍ଗବିହୀନ ହେବାର କଥା; କିନ୍ତୁ ଏହାର ବର୍ଣ୍ଣ ନୀଳ ହୋଇଥିବାରୁ ତାଙ୍କମନରେ ବିଭିନ୍ନ ପ୍ରଶ୍ନ ଉଦୟ ହେଲା । ଏହି ବିଷୟରେ ସେ ଅନେକ କଥା ଚିନ୍ତା କଲେ । ଶେଷରେ ସେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ ସୂର୍ଯ୍ୟର ଆଲୋକ ସମୁଦ୍ର-ତରଙ୍ଗ ଉପରେ ପଡ଼ିବା ଫଳରେ ଯେଉଁ ପ୍ରକ୍ରିୟା ହେଉଛି, ସେଥିପାଇଁ ସମୁଦ୍ରଜଳ ନୀଳ ଦିଶୁଛି ।

ରମଣ ବିଲାତରେ ପହଞ୍ଚି ବିଶ୍ୱବିଦ୍ୟାଳୟ ଅଧିବେଶନରେ ଯୋଗଦେଲେ । ସେ ସେଠାରେ ଉନ୍ନତ ଧରଣର ଏବଂ ନୂତନ ତଥ୍ୟସମ୍ବଳିତ କେତୋଟି ବକ୍ତୃତା ଦେଇଥିଲେ । ତାଙ୍କର ବକ୍ତୃତା ଶୁଣି ପାଶ୍ଚାତ୍ୟ ବୈଜ୍ଞାନିକମାନେ ଆନନ୍ଦିତ ହୋଇଥିଲେ । ଫଳରେ ଭାରତୀୟମାନଙ୍କ ସମ୍ବନ୍ଧରେ ସେମାନଙ୍କର ଯେଉଁ ସଂକୀର୍ଣ୍ଣ ଧାରଣା ଥିଲା, ତାହା ବଦଳିଗଲା ।

ରମଣ ଭାରତରେ ପନ୍ଦଅ୍ଷ ତାଙ୍କର ସିଦ୍ଧାନ୍ତ ଉପରେ ଗବେଷଣା ଆରମ୍ଭ କରଦେଲେ । ଆକାଶର ନୀଳରଙ୍ଗ, ପର୍ବତର ଉଚ୍ଚ ଶୃଙ୍ଗରେ ପ୍ରବାହିତ ବରଫସ୍ରୋତର ବଭିନ୍ନ ରଙ୍ଗ ବଷୟରେ ଗବେଷଣା ଆରମ୍ଭ ହେଲ । ତାଙ୍କର ସିଦ୍ଧାନ୍ତ ପତ୍ର-ପତ୍ରିକାରେ ପ୍ରକାଶ ପାଇଲ । ରମଣଙ୍କର ଏହି ନୂତନ ଗବେଷଣା ବୈଜ୍ଞାନକ-ମାନଙ୍କର ଦୃଷ୍ଟି ଆକର୍ଷଣ କଲା । ତାଙ୍କର ଖ୍ୟାତ ପୃଥିବୀରେ ବ୍ୟାପ୍ତ ହୋଇଗଲ । ଦନର ଅଧିକାଂଶ ସମୟ ସେ ଗବେଷଣାଗାରରେ କଟାଉଥିଲେ । ବଭିନ୍ନ ବଜ୍ଞାନ-ପୁସ୍ତକ ଓ ପତ୍ରିକା ପାଠ କର ସେ ଛାତ୍ରମାନଙ୍କୁ ପଦାର୍ଥ-ବଜ୍ଞାନ ବଷୟରେ ବକ୍ତୃତା ଦେଉଥିଲେ ।

ସେ ଦେଶର ସବୁ ବୈଜ୍ଞାନକମାନଙ୍କୁ ଏକତ୍ରିତ କରବାର ପ୍ରୟାସ ନେଇ କାର୍ଯ୍ୟ ଆରମ୍ଭ କଲେ । ଭାରତୀୟ ବଜ୍ଞାନ କଂଗ୍ରେସର ସମ୍ପାଦକ ରୂପେ ସେ ଅନେକ ବର୍ଷ କାର୍ଯ୍ୟ କରଥିଲେ । ସେ ଭାରତର ବଜ୍ଞାନାଗାର ସବୁ ପରଦର୍ଶନ କରଥିଲେ । ଭାରତୀୟ ଛାତ୍ରମାନଙ୍କୁ ମୌଳକ ଗବେଷଣା କରବା ପାଇଁ ସେ ସର୍ବଦା ଉତ୍ସାହିତ କରୁଥିଲେ ।

୧୯୨୪ ମସିହାରେ ସେ ଲଣ୍ଡନର ରୟାଲ ସୋସାଇଟିର (Royal Society of London) ସଭ୍ୟ ନର୍ବାଚତ ହୁଅନ୍ତି । ଭାରତର ଛଅ ଜଣ ବୈଜ୍ଞାନକ ଏହାର ସଭ୍ୟ ହେବାର ସୁଯୋଗ ଲଭ କରଅଛନ୍ତି । ସେ ଲଣ୍ଡନର ଡେଭି ଫାରେଡ଼େ ବଜ୍ଞାନାଗାରରେ ବକ୍ତୃତା କାର୍ଯ୍ୟ କରଥିଲେ । ଏହାପରେ ସେ ଲଣ୍ଡନରେ ଅନୁଷ୍ଠିତ କେଲଭିନ୍ ଶତବାର୍ଷିକରେ ଯୋଗ ଦଅନ୍ତି । ସେ ଟରଣ୍ଟୋ (Toronto) ଯାଇ ସେଠାରେ ଆନ୍ତର୍ଜାତକ ଗଣିତ କଂଗ୍ରେସରେ କଲକତା ବଶ୍ବବଦ୍ୟାଳୟର ପ୍ରତିନଧିଭାବେ ଯୋଗ ଦେଇଥିଲେ ।

ଏହାପରେ ରମଣ ଇଂରେଜ ସାମ୍ରାଜ୍ୟର ବିଜ୍ଞାନ କଂଗ୍ରେସରେ ଯୋଗ ଦେବା ପାଇଁ କାନାଡ଼ା ଗଲେ । ସେ ସେଠାରେ ଆଲୋକ ସମ୍ବନ୍ଧରେ ମୌଳିକ ଗବେଷଣା କରିଥିଲେ । ଏହିଠାରେ ସେ ଯୁକ୍ତରାଷ୍ଟ୍ର ଓ କାନାଡ଼ାର ପ୍ରସିଦ୍ଧ ବୈଜ୍ଞାନିକମାନଙ୍କ ସମ୍ପର୍କରେ ଆସିଥିଲେ । ପଦାର୍ଥ-ବିଜ୍ଞାନରେ ନୋବେଲ ପୁରସ୍କାର ପ୍ରାପ୍ତ ଅଧ୍ୟାପକ ମିଲିକାନଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ସେ କାଲିଫର୍ଣ୍ଣିଆର ଟେକ୍‌ନୋଲଜି ଇନ୍‌ଷ୍ଟିଚ୍ୟୁଟ୍‌ରେ ଚାରିମାସ ପର୍ଯ୍ୟନ୍ତ ଭିଜିଟିଂ ଅଧ୍ୟାପକଭାବରେ **(Visiting Professor)** କାର୍ଯ୍ୟ କରିଥିଲେ । ରମଣଙ୍କର ଏହିସବୁ କାର୍ଯ୍ୟଫଳରେ ପାଶ୍ଚାତ୍ୟ ବୈଜ୍ଞାନିକମାନେ ଭାରତୀୟ ବୈଜ୍ଞାନିକମାନଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇବା ନିମନ୍ତେ ଆଉ କୁଣ୍ଠାବୋଧ କଲେ ନାହିଁ ।

ରମଣ ଆମେରିକା-ଭ୍ରମଣକାଳରେ ନିଯୁୟର୍କ ସହରରେ ପୃଥିବୀର ଶ୍ରେଷ୍ଠ ଦୂରବୀକ୍ଷଣ ଯନ୍ତ୍ର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସେ ସ୍ୱୀୟ ଦେଶବାସୀ ଓ ପାଶ୍ଚାତ୍ୟବାସୀଙ୍କ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ଭାବ ଆଣିବା ନିମନ୍ତେ ଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ପୁରାତନ ଭାରତୀୟ ସଭ୍ୟତା ସମ୍ବନ୍ଧରେ ଅନେକ ଭାଷଣ ଦେଇଥିଲେ ।

ଉତ୍ତର-କାନାଡ଼ା ଯାଇ ସେ ଆମେରିକା-ଭ୍ରମଣ ଶେଷ କଲେ । ଏହା ପରେ ସେ ବିଲାତକୁ ଫେରିଆସି ଇଉରୋପର ଅନ୍ୟାନ୍ୟ ଦେଶରେ ଭ୍ରମଣ କରି ୧୯୨୫ ମସିହା ମାର୍ଚ୍ଚ ମାସରେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ଏଥର ଗବେଷଣା କରୁ କରୁ ସେ ତାଙ୍କର ପୃଥିବୀ ବିଖ୍ୟାତ ରମଣ-ସିଦ୍ଧାନ୍ତରେ **(Raman Effect)**

ଉପନୀତ ହେଲେ । ଏହି ଆବିଷ୍କାର ଫଳରେ ପଦାର୍ଥ-ବିଜ୍ଞାନରେ ଅନେକ ଉନ୍ନତି ସମ୍ଭବପର ହୋଇପାରିଲା ।

କିଛି ଦିନପରେ ରମଣ ରୁଷିଆ ବିଜ୍ଞାନ କଂଗ୍ରେସରେ ଯୋଗ ଦେବାପାଇଁ ନିମନ୍ତ୍ରିତ ହୋଇଥିଲେ । ରୁଷିଆ ଯାତ୍ରା କରି ସେ ସେଠାରେ କେତେଗୁଡ଼ିଏ ପ୍ରସିଦ୍ଧ ନଗର ଦେଖିଲେ । ଅନେକ ଐତିହାସିକ ସ୍ଥାନ ମଧ୍ୟ ସେ ପରିଦର୍ଶନ କରିଥିଲେ । ସେଠାରୁ ସେ ଇଟାଲି ଜର୍ମାନୀ ଓ ସୁଇଜରଲାଣ୍ଡ ଭ୍ରମଣରେ ଯାଇଥିଲେ ।

ଏହିଥର ୟୁରୋପ ଭ୍ରମଣରୁ ଫେରି ସେ ପଦାର୍ଥବିଜ୍ଞାନ-ସମ୍ବନ୍ଧରେ "ଭାରତୀୟ ପଦାର୍ଥବିଜ୍ଞାନ ପତ୍ରିକା" ନାମରେ ଖଣ୍ଡିଏ ପତ୍ରିକା ପ୍ରକାଶ କଲେ । ଭାରତୀୟ ପଦାର୍ଥ-ବିଜ୍ଞାନୀମାନଙ୍କର ଗବେଷଣାମୂଳକ ପ୍ରବନ୍ଧଗୁଡ଼ିକ ଏଥିରେ ପ୍ରକାଶ ପାଉଥିଲା । ଏହି ପତ୍ରିକାର ସୁନାମ ଅତିଶୀଘ୍ର ବ୍ୟାପିଗଲା ।

ରମଣ ବାଦ୍ୟଯନ୍ତ୍ରର ବୈଜ୍ଞାନିକ ତଥ୍ୟ ଉପରେ ପ୍ରବନ୍ଧ ଲେଖିଥିଲେ । ଏଥିପାଇଁ ଜର୍ମାନ୍ ବିଜ୍ଞାନ ପରିଷଦ ତରଫରୁ ତାଙ୍କୁ ଅନୁରୋଧ କରାଯାଇଥିଲା । ସେ ଭାରତର ବାଦ୍ୟଯନ୍ତ୍ର ବୀଣା ଓ ମୃଦଙ୍ଗ ସମ୍ବନ୍ଧରେ ପ୍ରବନ୍ଧଟିଏ ଲେଖିଥିଲେ । ରମଣଙ୍କ ପୂର୍ବରୁ ଅନ୍ୟ କୌଣସି ଭାରତୀୟ ଏପରି ସମ୍ମାନ ଲାଭ କରି ନ ଥିଲେ ।

୧୯୨୯ ମସିହାରେ ମାନ୍ଦ୍ରାଜଠାରେ ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ସମ୍ମିଳନୀରେ ତାଙ୍କୁ ସଭାପତି-ପଦରେ ଅଭିଷିକ୍ତ କରାଯାଇଥିଲା । ଇଟାଲିର ବିଜ୍ଞାନ ପରିଷଦ ତାଙ୍କୁ ଏକ ସ୍ୱର୍ଣ୍ଣପଦକ ପୁରସ୍କାର ଦେଇଥିଲେ । ରୟାଲ ସୋସାଇଟିରୁ ଆଉ ଏକ ପଦକ

ସେ ଲାଭ କରିଥିଲେ । ସେ "ଫାରାଡେ ସୋସାଇଟି" ପକ୍ଷରୁ ନିମନ୍ତ୍ରିତ ହୋଇ ସସ୍ତ୍ରୀକ ବିଳାତ ଯାଇଥିଲେ । ଏହି ସୁଯୋଗରେ ସେ ପୁଣି ଥରେ ୟୁରୋପରେ ପ୍ରଧାନ ବିଶ୍ୱବିଦ୍ୟାଳୟଗୁଡ଼ିକ ପରିଦର୍ଶନ କରିଥିଲେ । ବ୍ରିଟିଶ ସରକାରଙ୍କଦ୍ୱାରା ସେ ନାଇଟ୍ (Knight) ଉପାଧିରେ ଭୂଷିତ ହୋଇଥିଲେ । ଇଂଲଣ୍ଡର ରଜା ତାଙ୍କୁ ସାର୍ ଉପାଧିଦ୍ୱାରା ସମ୍ମାନ ପ୍ରଦର୍ଶନ କରିଥିଲେ ।

୧୯୩୦ ମସିହାରେ ସେ ପୃଥିବୀର ସର୍ବଶ୍ରେଷ୍ଠ ସମ୍ମାନର ଅଧିକାରୀ ହୋଇଥିଲେ । ଏହି ରମଣ ରଶ୍ମିର ନୂତନ ତଥ୍ୟ ନିମିତ୍ତ ନୋବେଲ ପୁରସ୍କାର ଲାଭ କଲେ । ତାଙ୍କ ପୂର୍ବରୁ କେବଳ କବିଗୁରୁ ରବୀନ୍ଦ୍ରନାଥ ଭାରତୀୟମାନଙ୍କ ମଧ୍ୟରେ ଏହି ସମ୍ମାନ ଲଭ କରିଥିଲେ । ବିଜ୍ଞାନରେ ନୂତନ ତଥ୍ୟ ଆବିଷ୍କାର କରି ସମଗ୍ର ଏସିଆରେ ପ୍ରଥମ ଥରପାଇଁ ରମଣ ନୋବେଲ୍ ପୁରସ୍କାର ପାଇଥିଲେ । ନୋବେଲ୍ ପୁରସ୍କାର ଲାଭ କରିବା ପରେ ପରେ ଅନେକ ବିଦେଶୀୟ ବିଶ୍ୱବିଦ୍ୟାଳୟ ତାଙ୍କୁ ଡାକ୍ତର ଉପାଧିରେ ଭୂଷିତ କଲେ । କଲିକତା, ବମ୍ବେ, ବନାରସ ଓ ମାଡ୍ରାସ ବିଶ୍ୱବିଦ୍ୟାଳୟ ରମଣଙ୍କୁ ଅନରାରୀ ଡାକ୍ତର ଉପାଧି ଦେଇ ସମ୍ମାନ ଦେଖାଇଲେ ।

ରମଣ ୧୯୩୩ ମସିହାରେ କଲିକତାରୁ ବାଙ୍ଗାଲୋରକୁ ଚାଲିଆସିଲେ । ବାଙ୍ଗାଲୋରରେ ପ୍ରତିଷ୍ଠିତ "ଭାରତୀୟ ବିଜ୍ଞାନ ଅନୁଷ୍ଠାନ"ର ଅଧ୍ୟକ୍ଷରୂପେ ସେ କାର୍ଯ୍ୟ କରିଥିଲେ । ଏହିଠାରେ ସେ ହୀରାର ଅଣୁ ପରମାଣୁ ସମ୍ବନ୍ଧରେ ଗବେଷଣା ଆରମ୍ଭ କଲେ । ୧୯୩୪ ମସିହାରେ ରମଣ "ଭାରତୀୟ ବିଜ୍ଞାନ ଏକାଡେମୀ" (Indian Anademy of Science) ସ୍ଥାପନ କରିଥିଲେ ।

ବିଜ୍ଞାନସମ୍ବନ୍ଧୀୟ ଗବେଷଣାତ୍ମକ ପୁସ୍ତକମାନ ଏହି ଏକାଡେମୀଦ୍ୱାରା ପ୍ରକାଶିତ ହୋଇଥିଲା ।

ରମଣ ନିଜର ଯନ୍ତ୍ରବଳରେ ଏକ ପ୍ରସିଦ୍ଧ ବୈଜ୍ଞାନିକ ହୋଇପାରିଥିଲେ । ସେ ଜଣେ ଗବେଷକଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । କୌଣସି ବୈଦେଶିକ ବିଜ୍ଞାନାଗାରରେ ସେ ଶିକ୍ଷା ପାଇ ନ ଥିଲେ; ମାତ୍ର ତାଙ୍କର ମୌଳିକତା ଥିଲା । ପ୍ରଗାଢ଼ ପରିଶ୍ରମ, ଅଦମ୍ୟ ଉତ୍ସାହ ଓ ନିଷ୍ଠାପର ଗବେଷଣାବଳରେ ସେ ପୃଥିବୀର ଶ୍ରେଷ୍ଠ ସମ୍ମାନ ଲାଭ କରିବା ସୁଯୋଗ ପାଇପାରିଥିଲେ ।

ନୂତନ ବିଷୟ ଶିକ୍ଷା କରିବା ରମଣଙ୍କର ଲକ୍ଷ୍ୟ ଥିଲା । ଗବେଷଣାକାର୍ଯ୍ୟରେ ସେ ନିଜକୁ ହଜାଇ ଦେଉଥିଲେ । ଜ୍ଞାନ ଲାଭ କରିବାନିମନ୍ତେ ସେ ସତତ ବ୍ୟାକୁଳ ଥିଲେ । ବିଜ୍ଞାନକ୍ଷେତ୍ରରେ ଭାରତକୁ ଆଗେଇନେବା ତାଙ୍କର ଉଦ୍ଦେଶ୍ୟ ଥିଲା । ଭାରତରେ ବିଜ୍ଞାନଶିକ୍ଷାର ପ୍ରସାରନିମନ୍ତେ ସେ ଆପ୍ରାଣ ଚେଷ୍ଟା କରିଥିଲେ । ତାଙ୍କର ଚେଷ୍ଟାଦ୍ୱାରା ଭାରତରେ କେତେକ ନୂତନ ବିଜ୍ଞାନାଗାର ସ୍ଥାପିତ ହୋଇଥିଲା । ତାଙ୍କ ଛାତ୍ରମାନେ ଆଜିପର୍ଯ୍ୟନ୍ତ ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ପ୍ରଶଂସାର ସହିତ କାର୍ଯ୍ୟ କରୁଅଛନ୍ତି ।

ଭାରତର ତଥା ବିଶ୍ୱର ବିଭିନ୍ନ ବିଜ୍ଞାନ ପତ୍ରିକାରେ ତାଙ୍କର ଅନେକ ମୌଳିକ ଗବେଷଣା ପ୍ରବନ୍ଧାକାରରେ ପ୍ରକାଶିତ ହୋଇଛି । ୧୯୨୨ ମସିହାଠାରୁ ୧୯୩୧ ମସିହା ମଧ୍ୟରେ ସେ ପ୍ରାୟ ତିନି ଶହ ତାରିଖ ପ୍ରବନ୍ଧ ପ୍ରକାଶ କରିଥିଲେ ।

ବାଙ୍ଗାଲୋରରେ ସେ 'ରମଣ ବିଜ୍ଞାନ ଭବନ' ସ୍ଥାପନ କରିଛନ୍ତି । ଏହି ଗବେଷଣାଗାରରେ ସେ ଆମରଣ ଗବେଷଣାରେ ବ୍ୟାପୃତ ଥିଲେ ।

ରମଣ ଯଦି ଆଉ କିଛି ଦିନ ବଞ୍ଚି ଥାଆନ୍ତେ, ତାହାହେଲେ ବୈଜ୍ଞାନିକ ଗବେଷଣାକ୍ଷେତ୍ରରେ ଆମପାଇଁ ଆଉ ବିସ୍ମୃତ କିଛି କରିପାରିଥାନ୍ତେ; ମାତ୍ର ୧୯୭୦ ମସିହା ନଭେମ୍ବର ୨୩ ତାରିଖ ଦିନ ହଠାତ୍ ହୃତ୍‌ପିଣ୍ଡ ବନ୍ଦ ହୋଇଯିବାଫଳରେ ବାଙ୍ଗାଲୋର-ଠାରେ ତାଙ୍କର ପରଲୋକ ହୋଇଗଲା ।

